# ବଜାରେ ବଜା
# ରସଗୋଲା ଖିଆ
# କେମିତି ମଜା

ମନୋରମା ବିଶ୍ୱାଳ ମହାପାତ୍ର



# ବଜାରେ ବଜା
# ରସଗୋଲା ଖିଆ
# କେମିତି ମଜା



ଡକ୍ଟର ମନୋରମା ବିଶ୍ୱାଳ ମହାପାତ୍ର

ବଜାରେ ବଜା
ରସଗୋଲା ଖିଆ କେମିତି ମଜା

କବି- ଡ଼କ୍ଟର ମନୋରମା ବିଶ୍ୱାଳ
ମହାପାତ୍ର
ପ୍ରୀତମପୁରୀ, ୧୨୫ ଆଚାର୍ଯ୍ୟ ବିହାର
ଭୁବନେଶ୍ୱର- ୧୩

ପ୍ରକାଶକ:
ପ୍ରୀତମ ପ୍ରକାଶନ
ମୋ : ୯୪୩୭୦୧୧୦୦୩

ଦ୍ୱିତୀୟ ସଂସ୍କରଣ- ୨୦୧୦

ପ୍ରଚ୍ଛଦ ଅଂକନ:
ଶିବ ପାଣିଗ୍ରାହୀ

ମୁଦ୍ରଣ:
ଦିବ୍ୟ ମୁଦ୍ରଣୀ, ସାମନ୍ତରାପୁର, ଭୁବନେଶ୍ୱର
ମୋ : ୯୪୩୭୦୦୬୫୬୬

ମୂଲ୍ୟ: ₹ ୪୫ /-





**Bazarebaza**
**Rasogala Khia Kemiti**
**Maja**

Author
**Dr. Manorama Biswal Mohapatra**
Pritampuri, Acharya Vihar,
Bhubaneswar

**Publisher**
Pritam Prakashan
M : 9430711003

Design
**Prof. Siba Panigrahi**

Printer:
Divya Mudrani.
Divya Vihar, Samatarapur, BBSR

Price: ₹. 45/-

# ସୂଚୀପତ୍ର



# ରଙ୍ଗ ନେ ରଙ୍ଗ ନେ



ରଙ୍ଗ ନେ
ରଙ୍ଗ ନେ
ପୋହଳାର ମାଳି ନେ
ମୋ କଣ୍ଢେଇକୁ
ସଜେଇ ଦେ ।
ରଙ୍ଗ ନେ
ରଙ୍ଗ ନେ
ଝିଲିମିଲିଆ ପୋଷାକ ନେ
ମୋ କଣ୍ଢେଇକୁ
ପିନ୍ଧାଇ ଦେ ।
ପିନ୍ଧାଇ ଦେ ।



# କୁନି ଆମର କଥା କହୁଛି



କୁନି ଆମର କଥା କହୁଛି
ଲାଗଇ ଗୁଲୁଗୁଲିଆ
ଏବେ ତ ସିଏ ଚାଲି ଶିଖିଛି ।
ହେଉଛି ଚୁଲୁବୁଲିଆ ।
ଚାଲି ଚାଲିକା ପଡି ଯାଉଛି ।
ଉଠି ପଡି ସେ ହସି ଦେଉଛି ।



# କୁନି ଶୁଆଟି କେଉଁଠି ଥାଏ

ମଆଲୋ ମାଆ
ମଆଲୋ ମାଆ
କୁନି ଶୁଆଟି କେଉଁଠି ଥାଏ
ମୋ ପରି ସେ ଭାତ କି ଖାଏ
ମୋ ପରି ସେ ପାଣି କି ପିଏ
କେଉଁଠି ରହେ ସେ
କେଉଁଠି ଶୁଏ
ଶେଯରେ ଶୁଏ କି
ଗଛରେ ଶୁଏ ?





# ଘରଚଟିଆ

ଆମ ବଗିଚାରେ ଘରଚଟିଆ
ଦେଇଥିଲା ତାର ତିନୋଟି ଛୁଆ ।
ଜୁଲୁ ଜୁଲୁ କରି ଅନାଇ ରହି
ମାଆ ଯାହା ଦିଏ ଦିଅନ୍ତି ଖାଇ
ଆଉ ଗୋଟାଏ ତ ଅନାଏ ନାହିଁ
କାନ୍ଦୁଥାଏ ଖାଲି ଖାଇବା ପାଇଁ ।

# ବଡ଼ମା ବଡ଼ମା

ବଡ଼ମା ବଡ଼ମା
ମୋ ବଡ଼ମାମା
ଆଣିଛନ୍ତି ସିଏ
ମୋ ପାଇଁ ଜାମା
ମୋ ଜାମାରେ ହାତୀ
ଭାଲୁର ଛବି
ପିନ୍ଧିଦେଇ ତାକୁ
ମୁଁ ବୁଲି ଯିବି ।



# ବଜାରେ ବଜା

ବଜାରେ ବଜା
ରସଗୋଲା ଖିଆ
କେମିତି ମଜା ।
ବଜାରରୁ ବାପା ରସଗୋଲା ହାଣ୍ଡି ଆଣିବେ
ମୋ ପାଇଁ ସେ ଆଜି
ନୂଆ ଜାମା ପ୍ୟାଣ୍ଟ କିଣିବେ ।
ଆଜି ମୋ ଜନମ ଦିନ
ଖିରୀ ରସଗୋଲା ଖାଇବି ଖୁସିରେ
ଆନନ୍ଦ ହୋଇବ ମନ ।

# ଆସ ଲୁଚକାଳି ଖେଳିବା

ଆସ ଲୁଚକାଳି ଖେଳିବା
ଖେଳି ସାରି ତାଳି ମାରିବା
ହାତ ଗୋଡ଼ ଆମ ଧୁଆଇ
ମାଆ ଦେବେ ପିଠା ଖୁଆଇ ।



# ମାଟିର ସବାରୀ ଦିଅ ଗଢ଼େଇ



ଅପା ମୋତେ ତମେ ଆଜି ଖେଳାଅ
ଦିନ ସାରା କେଉଁଆଡ଼େ ନ ଯାଅ
ମାଟିର ସବାରୀ ଦିଅ ଗଢ଼େଇ
ଖୁସି ହେଉ ମୋର କୁନି କଣ୍ଢେଇ ।



## ନୂଆ ବରଷ ଆ

ଆଜି ନୂଆ ବରଷରେ
    କେତେ ଗୀତ ଗାଇବା
ନୂଆ ନୂଆ ଖେଳ ଖେଳି
    ପିଠା ପଣା ଖାଇବା
ଖରାମା ଦେ ଆଜି ଖରେଇ
ଶୀତ ଦିନ ସକାଳର
    ଶୀତ ଯାଉ ଉଭେଇ
ବଢ଼ିଆ ବଢ଼ିଆ କେତେ
ଗପମୁଣି ସାଥେ ଆଣି
ନୂଆ ବରଷ ଆସେ
    ନୂଆ ବରଷ ।





## ଆରେ ମେଘ ଆ

ଆରେ ମେଘ ଆ
ନାନା ଜାତିର ଫୁଲ ସବୁକୁ
ଫୁଟାଇ ଦେଇ ଯା
ଆରେ ମେଘ ଆ ।
ମେଘରେ ମେଘ
କାଳିଆ ମେଘ
ଆଜି ହୋଇଛି
ବରଷା ପାଗ
ଭାଷି ଭାଷି ମୋ କାଗଜ ଡଙ୍ଗା
ମାମୁ ଘରକୁ ଯା
ଆରେ ମେଘ ଆ ।





## କୁନି ବୋଲି ଯେଉଁ ଝିଅଟି

କୁନି ବୋଲି ଯେଉଁ ଝିଅଟି
କାଖ ହୋଇଥାଏ ସିଏଟି
କୁନି ବୋଲି ଯେଉଁ ଝିଅଟି
ମାଆ କୋଳେ ଶୁଏ ସିଏଟି
କୁନି ବୋଲି ଯେଉଁ ଝିଅଟି
ଖିଲି ଖିଲି ହସେ ସିଏଟି ।



## ପେଁକାଳି ଆଜି ବାଜିଲାରେ

ପେଁକାଳି ଆଜି ବାଜିଲାରେ
ଆମ କୁନା ନିଦ ଭାଜିଲାରେ
ପେଁକାଳି କିଆଁ ବାଜିଲୁ
କୁନାକୁ ନିଦରୁ ଡ଼ାକିଲୁ
ସିଏତ ଅଝଟ କରିବ
କିଏ ସେ ତାହାକୁ ପାରିବ ।

## ପୁଷିରେ ପୁଷି

ପୁଷିରେ ପୁଷି
ମୋ ପାଖକୁ ଆ
କ୍ଷୀର ଦେବି ମାଛ ଦେବି
ଖାଇବୁ ଯଦି ଆ
ଚୂଲି ମୁଣ୍ଡଟା ଉଷୁମ ଭାରି
ସେଇଠି ଶୋଇଥା
ଖାଇବା ବେଳ ହୋଇବା ଜାଣି
ମିଆଁଉ କରୁଥା ।



# ଟୁକୁରୁ ଟୁକୁ ଟୁକୁରୁ ଟୁକୁ

ଟୁକୁରୁ ଟୁକୁ ଟୁକୁରୁ ଟୁକୁ
ମୁନା ଯାଇଥିଲା ମାମୁ ଘରକୁ
ମାମୁଙ୍କ ଗାଆଁର ନାଳିଆ କଇଁ
ନାଳିଆ କଇଁକୁ ତୋଳିବା ପାଇଁ
ମୁନା ବଢ଼ାଇଲା ହାତକୁ ତାର
ଖସିଗଲା ଗୋଡ଼ ଟିକି ମୁନାର
ଧାଇଁ ଆସି ମାମୁ କାଖେଇ ନେଲେ
ମୁନାର ଦେହକୁ ଆଉଁଷି ଦେଲେ ।





# କୁନି ଝିଅଟା ଶୋଉନି କିଆଁ

କୁନି ଝିଅଟା ଶୋଉନି କିଆଁ ବୋଉ
ମିଟି ମିଟି ହୋଇ ଚାହିଁଛି ।
କେତେବେଳେ ସିଏ ହସୁଛି
କେତେବେଳେ ସିଏ କାନ୍ଦୁଛି ।
କୁନି ଝିଅଟା ଶୋଉନି କିଆଁ ବୋଉ
ଭୋକ କି ତାହାକୁ ଲାଗୁଛି ।
ତୋତେ ଦେଖି ସିଏ ହସୁଛି ।
ମୋତେ ଦେଖି ସିଏ ରୁଷୁଛି ।



# ନିଦ ମାଉସୀ ଆ

ନିଦ ମାଉସୀ ଲୋ ନିଦ ମାଉସୀ
କୁନ୍ ମୁନ୍ ଆମ ହେଉଛି ଖୁସି
ଆଉ ଟିକେ ପରେ ପଡ଼ିବ ଶୋଇ
ସପନ ଦେଖିବ ନିଦରେ ଥାଇ ।
ନିଦ ଭାଙ୍ଗିଗଲେ ଉଠିବ ବସି
ଗୁଲୁ ଗୁଲୁ କଥା କହିବ ହସି
ନିଦ ମାଉସୀଲୋ ନିଦ ମାଉସୀ
ମୋ କୁନିର ଆଖି ଦେ ଆଉଁଷି ।



# ତୁ କି ଶୋଇବୁ ନାହିଁ

କୁନି ଚଢେଇ ତ ଶୋଇପଡ଼ିଲାଣି
ମାଆର କୋଳରେ ଯାଇ
ଖେଳି ଖେଳି ବାବୁ ଥକି ପଡ଼ିଲୁଣି
ତୁକି ଶୋଇବୁ ନାହିଁ ?
ମାଆ ଚଢେଇ ତ ଗପ ଶୁଣାଉଛି
ଛୁଆକୁ ଶୁଆଇ ଦେଇ
ତୋ ଖେଳ କଣ୍ଢେଇ ଶୋଇ ପଡ଼ିଲାଣି
ତୁକି ଶୋଇବୁ ନାହିଁ ?
ତୋତେ ମୁଁ କହିବି ଗପଟିଏ ବାବୁ
ଧୀରେ ଧୀରେ ଯାଆ ଶୋଇ ।



## ଫୁଲଟି ଫୁଟିବ ମୋ ମନ ଜାଣି

ଛୋଟିଆ ଚାରାଟି ପାଖୁଡା ମେଲି
ଏତେ ଦିନ ପରେ ଫୁଟୁଛି ବୋଲି
ଭଅଁର ଗାଉଛି ମଧୁର ଗୀତ
ସାଙ୍ଗ ହୋଇ ଦୁହେଁ ବସିବା ମିତ
ଚାରାଗଛ ମୂଳେ ଦିଏ ମୁଁ ପାଣି
ଫୁଲଟି ଫୁଟିବ ମୋ ମନ ଜାଣି ।



## କୁନିର ପୁଷିକୁ ଜର ହୋଇଛି

କୁନିର ପୁଷିକୁ ଜର ହୋଇଛି
ପୁଷି କଅଁଣ ଖାଇବରେ
କୁନିର ପୁଷିକୁ ଜର ହୋଇଛି
ପୁଷି କେଉଁଠି ଶୋଇବରେ
କୁନିର ପୁଷିକୁ ଜର ହୋଇଛି
ପୁଷି ଭାକୁର ଖାଇବରେ
ମାଛ ନ ଖାଇ ପୁଷି ବିଲେଇ
କେମିତି ରହିବରେ ।



# ଆଲୁ ବାଇଗଣ

ଆଲୁ ବାଇଗଣ ପୋଟଳ
ସାରୁ ଖମ୍ବଆଲୁ ବନ୍ତଳ
ପୋଇ ଶାଗ ପାଣି କଖାରୁ
ସବୁ ମିଶି ମାଣି ଘାଣ୍ଟିଆ ହୋଇଲେ
ଲାଳ ବୋହିଯାଏ ପାଟିରୁ ।





# ନଅଶନଉ ନଅଶନଉ



ନଅଶନଉ
ନଅଶନଉ
ଧାନ ଖାଇଗଲା
ଡାମରା କାଉ ।
ଡାମରା କାଉରେ
ଡାମରା କାଉ
ସକାଳ ଆସିଲେ
ଡାକି ଉଠାଉ
ଡାକି ଉଠାଉ ।



# ଝୁଲ୍‌ରେ ହାତୀ ଝୁଲ୍‌ରେ



ଝୁଲ୍‌ରେ ହାତୀ ଝୁଲ୍‌ରେ
ମାମୁନି ଆମର ଝୁଲ୍‌ରେ
ମାମୁନି ଝୁଲୁଛି ମାଆ କୋଳରେ
ଝୁଲିଝୁଲି କେତେ ଗୀତ ବୋଲେରେ
ଝୁଲ୍‌ରେ ମାମୁନି ଝୁଲ୍‌ରେ
ଗୀତ ଗାଇ ଗାଇ ଝୁଲ୍‌ରେ
ହସ ଲଡୁ ଖାଇ ଫୁଲ୍‌ରେ ।

# ତାରା ହସେ ଜହ୍ନ ହସେ

ତାରା ହସେ
ଜହ୍ନ ହସେ
ହସେ ଆମ ବୁଢ଼ିଆ
ଫୁଲ ହସେ ଗଛର ଡାଳେ
କଇଁ ହସେ ପୋଖରୀ ଜଳେ
ବୁଢ଼ିଆର ହସ ମୋତେ
ଲାଗେ ବଡ଼ ବଢ଼ିଆ ।

# ଟୁପ୍‌ଟୁପ୍‌ଟୁପ୍ ଟୋପି ବରଷା

ଟୁପ୍‌ଟୁପ୍‌ଟୁପ୍ ଟୋପି ବରଷା
ଟୋପି ବରଷାର ପାଣି
ଟୁବି ଗଡିଆରେ ଟୁବି ଗଡିଆ
କେଉଁଠି ବେଙ୍ଗୁଲୀ ରାଣୀ ।



## ଖରା ମା ଦେ ଆଜି ଖରେଇ

ଖରା ମା ଦେ ଆଜି ଖରେଇ
ଖରା ମା ଦେ ଆଜି ଖରେଇ
ଶୀତ ତାର ମୁହଁ ଦେଉ ଲୁଚାଇ
ନୂଆ ବରଷରେ ଆଜି
ନୂଆ ନୂଆ ଗୀତ ଗାଇ
କୁନି ଗଲା ମା କୋଳେ ନିଦେଇ
ନିଦ ମାଉସୀ ନିଦ ମାଉସୀ
ମୋ କୋଳକୁ ଆ
ପିଠା ଦେବି ମିଠା ଦେବି
କରତୁ ବଡ଼ ଆଁ ।

# ବାଇଚଢ଼େଇ

ଝରକା ବାଟେ ଦେଖିଲା ମୁନା
ତାଳ ଗଛରେ ବାଇଚଢ଼େଇ
କହିଲା ମୁନା ମାଆ ଲୋ ମାଆ
ବାଇଚଢ଼େଇ ମାଆକି ନାହିଁ
ତୁମେ ତ ହେଲ ମୋର ମାଆ
ତା ମାଆଟି କାହିଁ
ମୋ କ୍ଷୀରରୁ ଅଧେ ତାହାକୁ
ଦିଅ ପିଇବା ପାଇଁ ।



# ବାଦାମ ବାଲା

ବାଦାମ ବାଲା ବାଦାମ ବାଲା
ଟିକିଏ ରହି ଯା
କୁଡୁମୁଡିଆ ବାଦାମ ଭଜା
ମୋତେ ତୁ ଦେଇଯା
ଭାଇ ଯାଇଛି ଇସକୁଲକୁ
ବାପା ନାହାନ୍ତି ଘରେ
ବାପା ଆସିଲେ ହୋଇବେ ଖୁସି
ଆଉ ଟିକିଏ ପରେ
ବାଦାମ ବାଲା ବାଦାମ ବାଲା
ବାଦାମ ମୋତେ ଦେ
ପିଜୁଳିଟିଏ ରଖିଛି ମୁହିଁ
ସେଇଟା ତୁହି ନେ ।



# ଆମରି ଗାଁ'ର ଗଡିଆ

ଆମରି ଗାଁ'ର ଗଡିଆ
କଇଁ ଫୁଟେ କେତେ ବଢ଼ିଆ
କଇଁ ମୂଳେ ଥିଲା ଶେଉଳ
ଶେଉଳ ଦେଖିଲା ମାଉଳ
ବୁଦାମୂଳେ ଛପି ରହିଲା
ଶେଉଳ ବେକକୁ ଧଇଲା ।




# ଟିକ୍ ଟିକ୍ ଟିକ୍

ଟିକ୍ ଟିକ୍ ଟିକ୍
ଘଡି ଚାଲେ ଟିକ୍
ଆଖି ଖୋଲି କୁନ୍‌ମୁନି
ହସେ ଫିକ୍ ଫିକ୍
କୁନ୍ ମୁନି କୁନ୍ ମୁନି
ମୋ କୋଳକୁ ଆ
ଝୁଲ୍ ହାତୀ କରୁଛି ତୋତେ
ଯାଆତୁ ଶୋଇ ଯା ।

# ଫିକ୍ କିନି ଦେଲା ହସି

ମୁଣ୍ଡରେ ସିନ୍ଦୁର ଅଳତା ବୋଳି
ପିନ୍ଧିଛି ମାମୁନୀ ଅପାର ମାଳି
ଅପା ବହି ଖାତା ହାତରେ ଧରି
ମାମୁନି ଯାଉଛି ଇସ୍କୁଲ କରି
ଅପା ଦେଖି ଦେଲା ଆସି
ଡରରେ ମାମୁନୀ ବହିଖାତା ଛାଡି
ଦେଲା ଫିକ୍ କିନି ହସି ।

# ଡିବିରି ଆଲୁଅ ଜୁଳୁଜୁଳୁ

ଡିବିରି ଆଲୁଅ ଜୁଳୁଜୁଳୁ
ନଈ ବହି ଯାଏ କୁଳୁକୁଳୁ
ଆକାଶରେ ତାରା ମିଟିମିଟି
ଠିକ୍ ଠିକ୍ କହେ ଝିଟିପିଟି ।

## ମାମୁନି ହସିଲା କାଖରେ ଥାଇ

ସଢ଼େଇରେ ଭାତ ତିଅଣ କେତେ ।
କରିଛି ମାମୁନି କେମିତି ଏତେ
ଖାଇବାକୁ ଦେବ ଯତନ କରି
ପାଖରେ ବସିବ ମାଆଟି ପରି
ଗେଲ କରି ବାପା ନେଲେ କାଖେଇ
ମାମୁନି ହସିଲା କାଖରେ ଥାଇ ।





## କୁନା କଣ୍ଢେଇ ଘର

ସାନ କଣ୍ଢେଇ ଶୋଇ ଯାଉଛି
ଚାଦର ଘୋଡ଼ି ହୋଇ
ବଡ଼ କଣ୍ଢେଇ କୁନା ଆଡ଼କୁ
ଦେଉଛି ଧୀରେ ଚାହିଁ
ଛୁଆ କଣ୍ଢେଇ ଖେଳୁଛି ବସି
ମୁଣ୍ଡ ହଲାଇ ତାର
ମାଆ ଆସିଲେ ଦେଖିବା ପାଇଁ
କୁନା କଣ୍ଢେଇ ଘର ।

# ଅପା ଡାକଇ ଗେହ୍ଲେଇନାନୀ

ବାପା ଡାକନ୍ତି ମାମୁନି ବୋଲି
ମୁମୁନି ଡାକେ ଭାଇ
ଅପା ଡାକଇ ଗେହ୍ଲେଇ ନାନୀ
ମଇନା ଡାକେ ଆଈ
ମାମୁ ଡାକନ୍ତି ମାମିନା ବୋଲି
ଆଦର କରି କେତେ
ମିଠେଇ କିଣି ଦିଅନ୍ତି ଆଣି
ଖାଇବା ପାଇଁ ମୋତେ ।







## ଟିକି ଚଢ଼େଇ ଟିକି ଚଢ଼େଇ

ଟିକି ଚଢ଼େଇ ଟିକି ଚଢ଼େଇ
ଉଡ଼ି ଯାଉତୁ ଡେଣା ହଲେଇ
ଟିକି ଚଢ଼େଇ ଟିକି ଚଢ଼େଇ
ଖେଳିବାକୁ ତୋ ବେଳ କି ନାହିଁ
ଟିକି ଚଢ଼େଇ ଟିକି ଚଢ଼େଇ
ଟିକି ଟିକି ପର ଦେ ଝଡେଇ ।



## କାକୁଡ଼ିଟିଏ ନେଇଯା

କାକୁଡିଟିଏ ନେଇଯା
ପିଜୁଳିଟିଏ ଦେଇଯା
ମୋ କଣ୍ଢେଇ ଶୋଇ ଯାଇଛି
କଦଳୀଟିଏ ଥୋଇଯା ।







# ନୂଆ ବରଷ ଆ

ଆଜି ଦିନ କଟିଯିବ
ହସ ଆଉ ଖୁସିରେ
ନୂଆ ଛବି ଆଙ୍କି ଦେବି
ଶିଶୁଲେଖା ପିଠିରେ
ବାପା ଖୁସି ହୋଇବେ
ଗପ କେତେ କହିବେ

ବଜାରରୁ ମୋ ପାଇଁ
ରେଲ୍ ଗାଡି ଆଣିବେ
ରେଳଗାଡି ମୋତେ ଆଜି
ମାମୁ ଘର ନେଇଯା
ନୂଆ ବରଷ ଆ
ନୂଆ ବରଷ ଆ ।



# ମନୋରମା ବିଶ୍ୱାଳ ମହାପାତ୍ରଙ୍କ

## ବିଭିନ୍ନ ଭାରତୀୟ ଭାଷାରେ
## ଅନୂଦିତ ଶିଶୁ ସାହିତ୍ୟ















